# ଆଚାର୍ଯ୍ୟ ହରିହର



ଉଦୟନାଥ ଷଡ଼ଙ୍ଗୀ

ପ୍ରକାଶକ

ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି

କଟକ ପବ୍ଲିଶିଂ ହାଉସ୍

ବାଲୁବଜାର, କଟକ

ଦ୍ୱିତୀୟ ମୁଦ୍ରଣ—୧୯୮୮

ମୂଲ୍ୟ—ଦୁଇ ଟଙ୍କା ମାତ୍ର

ମୁଦ୍ରାକର

ଶ୍ରୀ ଶତ୍ରୁଘ୍ନ ମହାପାତ୍ର

ଭାରତୀ ପ୍ରେସ

କଟକ—୯



ଗର୍ବ ସ୍ୱେଚ୍ଛା ଶୋଷ୍ଠୀ ପଣ୍ଡିତ ଜନ କୂଳ
ସତ୍ୟର ସେବା ଲଗି ନିଜକୁ ଥିଲ ଭୁଲି,
ତେଣୁ ଏ ଦେଶର ଯେତେ ମନୀଷୀ ମାନ୍ୟଗଣ୍ୟ
ତୁମର ଦରଶନେ ହୋଇ ସେ ଥିଲେ ଧନ୍ୟ ।

# ଆଚାର୍ଯ୍ୟ ହରିହର

## —ଆଚାର୍ଯ୍ୟ ମହାଶୟ—

ଗୋଟିଏ ବଡ଼ ସ୍କୁଲ । ଓଡ଼ିଶାର ଚାରିଆଡ଼ୁ ବହୁତ ପିଲା ଆସି ସେ ସ୍କୁଲରେ ପଢ଼ନ୍ତି । ବୋର୍ଡିଂରେ ମଧ୍ୟ ଅନେକ ପିଲା ରହୁଥାଆନ୍ତି । ସବୁ ସମୟରେ ଗହଳ ଚହଳ ଲାଗିଥାଏ ।

ସେ ବର୍ଷ ଖୁବ ଜର ହେଉଥାଏ । ଗାଁ ଗାଁରେ ଲୋକେ ଜରରେ ପଡ଼ିଥାଆନ୍ତି । ସେ ବୋର୍ଡିଂରେ ମଧ୍ୟ ପାଞ୍ଚ ଜଣ ଜର ଭୋଗୁଥାଆନ୍ତି । ଚାରି ଜଣ ଛୋଟ ଛୋଟ ପିଲା, ଜଣେ ବୋର୍ଡିଂର ମେହେନ୍ତର । ଡାକ୍ତର ରୋଗୀଙ୍କୁ ଦେଖି ଔଷଧ ଦେଉଥାଆନ୍ତି । ବୋର୍ଡିଂର ପିଲାମାନେ ପାଳି କରି ସେବା ଶୁଶ୍ରୂଷା କରନ୍ତି; ବାର୍ଲି, ସାଗୁ ରାନ୍ଧି ଖୁଆଉଥାଆନ୍ତି ।

ବୋର୍ଡିଂର ନିୟମ ଥାଏ, ପ୍ରତିଦିନ ତିନି ଜଣ ପିଲା ପାଳି ହୋଇ ରୋଗୀମାନଙ୍କ ସେବା କରିବେ । ରୋଗୀଙ୍କୁ ଡାକ୍ତରଖାନାରୁ ଔଷଧ ଆଣି ଦେବେ । ବାର୍ଲି, ସାଗୁ, ଦୁଧ କିଣିଆଣି ପଥ୍ୟ କରାଇବେ । ଝାଡ଼ା, ବାନ୍ତି ହେଲେ ତାହା ସଫା କରିବେ । ଦରକାର ହେଲେ ରୋଗୀର ଗୋଡ଼ ଘଷି-ଦେବେ, ତା ବିଛଣା ଝାଡ଼ି ଖରାରେ ଦେବେ; ରାତି ଅନିଦ୍ରା ହୋଇ ରୋଗୀକୁ ଜଗି ବସିବେ, ଥରକୁ ଥର ଥର୍ମୋମିଟରରେ ଜରର ତାପ ଦେଖିବେ । ଏହିପରି ଯେତେ କାମ, ତାହା ସେହି ପିଲାଏ କରିବେ । ସେଦିନ ଗଲେ ପରଦିନ ଆଉ ତିନି ଜଣ ପିଲାଙ୍କର ପାଳି ପଡ଼ିବ । ସେମାନେ ରୋଗୀଙ୍କ କଥା ବୁଝିବେ, ଆଗ ଦିନର ପିଲା ତିନି ଜଣ ସ୍କୁଲକୁ ପଢ଼ିବାକୁ ଯିବେ ।

ଏମାନଙ୍କୁ ରୋଗୀସେବା ପାଳି କହନ୍ତି । ପ୍ରତିଦିନ ପାଳି କରି ପିଲାଏ ଏ କାମ କରନ୍ତି । ଯେଉଁ ସମୟରେ କେହି ରୋଗରେ ପଡ଼ି ନ ଥାନ୍ତି, ସେତେବେଳେ ତ କଥା ନାହିଁ । ଯେତେବେଳେ ଜଣେ ହେଲେ କେହି ରୋଗରେ ପଡ଼େ, ସେତେବେଳେ ପିଲାଙ୍କ କାମ ଲାଗି ରହିଥାଏ ।

ଏକାବେଳକେ ପାଞ୍ଚ ଜଣ ଜରରେ ପଡ଼ିଛନ୍ତି । ଯାହାଙ୍କର ରୋଗୀ-ସେବା ପାଳି, ସେମାନଙ୍କ କାମ ବଢ଼ିଯାଇଛି ।

ବୋର୍ଡିଂର ସୁପରିଂଟେଣ୍ଡେଣ୍ଟ ଭାରି ବ୍ୟସ୍ତ । ସେ ଯେତେ ସେବା କଲେ ବି ତାଙ୍କ ମନ ମାନେ ନାହିଁ । ସେ ନିଜେ ଥରକୁ ଥର ରୋଗୀଙ୍କ ପାଖକୁ ଯାଆନ୍ତି । ତାଙ୍କ ହାଲଚାଲ ବୁଝନ୍ତି । କିପରି କଅଣ କରିବାକୁ ହେବ, ପିଲାଙ୍କୁ ବତାଇ ଦିଅନ୍ତି ।

ଶେଷକୁ ନିଜେ ସୁପରିଂଟେଣ୍ଡେଣ୍ଟ ଜରରେ ପଡ଼ିଲେ । ଜର ବା ନ ହୁଅନ୍ତା କିପରି ? ଦିନଯାକ ସ୍କୁଲରେ ପଢ଼ାନ୍ତି । ବୋର୍ଡିଂକୁ ଆସିଲେ ରୋଗୀଙ୍କ କଥା ବୁଝନ୍ତି, ଆଉ ପିଲାଙ୍କ ହାରଗୁହାରି ଶୁଣନ୍ତି, ରାତିରେ ଘର ଘର ବୁଲି ରୋଗୀଙ୍କୁ ଦେଖନ୍ତି । ସବୁବେଳେ ପିଲାମାନଙ୍କ ହାଲଚାଲ ଚିନ୍ତା କରୁଥାଆନ୍ତି । ଏତେ ପରିଶ୍ରମ ପଡ଼ିବାରୁ ନିଜେ ଜର ଭୋଗିଲେ । ତଥାପି କାମ ଛାଡ଼ିଲେ ନାହିଁ କି ନିଜ ଦେହକୁ ନଜର ଦେଲେ ନାହିଁ ।

ତା ଫଳରେ ଜର ବେଶି ହେଲା; ସେ ଅଚେତ ହୋଇ ପଡ଼ି ରହିଲେ । ଯାହାଙ୍କର ରୋଗୀସେବା ପାଳି, ସେମାନେ ତ ପ୍ରାଣପଣେ ଲାଗି ପଡ଼ିଲେ । ବୋର୍ଡିଂର ସବୁ ପିଲା ଅତି ବ୍ୟସ୍ତ ହୋଇ ଉଠିଲେ । ପିଲାଏ ସେ ତାଙ୍କୁ ନିଜ ବାପାଠାରୁ ବଳି ବେଶି ଭକ୍ତି କରନ୍ତି । ସ୍କୁଲର ଶିକ୍ଷକମାନେ ସବୁବେଳେ ପାଖରେ ଜଗି ବସିଲେ—ସେ ଯେ ସବୁ ଶିକ୍ଷକଙ୍କର ବଡ଼ ଭାଇ —'ହରି ଭାଇନା' ।

ବହୁ ସେବା ଶୁଶ୍ରୂଷା ଫଳରେ କେତେ ଘଣ୍ଟାପରେ ତାଙ୍କର ଚେତା ଆସିଲା । ସେ ଆଖି ଫିଟାଇ ଚାହିଁଲେ, ଦେଖିଲେ ସବୁ ପିଲା ତାଙ୍କ ପାଖରେ ରୁଣ୍ଡ ହୋଇଛନ୍ତି । ଯାହାଙ୍କର ରୋଗୀସେବା ପାଳି ସେମାନେ ବି

ସେଠାରେ ରହୁଛନ୍ତି । ସେ ଆଖି ଫିଟାଇବା ସାଙ୍ଗେ ସାଙ୍ଗେ ସବା ଆଗ ପଚାରିଲେ, "ବାହୁଡା କପରି ଅଛି ?"

ବାହୁଡା ବୋର୍ଡିଂର ମେହେନ୍ତର । ପିଲାଏ କହିଲେ, "ସେ ଭଲ ଅଛି ।" ତହୁଁ ସୁପରିଂଟେଣ୍ଡେଣ୍ଟ ଗୋଟି ଗୋଟି ଜରୁଆ ପିଲାଙ୍କ ଅବସ୍ଥା କଅଣ ପଚାରି ବୁଝିଲେ । ସମସ୍ତେ ଭଲ ଅଛନ୍ତି ଶୁଣି କହିଲେ—ତୁମେ ସବୁ ତ ଏଠି ରହୁଛ । ସେମାନଙ୍କୁ ଆଉ ଦେଖୁଛ କିଏ ? ଯାଅ, ଆଗ ସେମାନଙ୍କ କଥା ବୁଝ ।

ନିଜ ଦେହ ପ୍ରତି ଟିକିଏ ନଜର ନାହିଁ, ନିଜ କଷ୍ଟକୁ କଷ୍ଟ ବୋଲି ସେ ମଣୁ ନାହାନ୍ତି । ଅଥଚ ଆଉ ସମସ୍ତେ କପରି ଅଛନ୍ତି, ତାଙ୍କୁ କଷ୍ଟ ହେଉଛି କି ନାହିଁ, ସେ କଥା ଆଗ ବୁଝୁଛନ୍ତି । ଘରର ଯେ ବାପ ମା, ସେ ପିଲାଙ୍କ ହାନିଲାଭ ଆଗ ବୁଝନ୍ତି । ପିଲାମାନଙ୍କର ଟିକିଏ ଦୁଃଖ କଷ୍ଟ ହେଲେ ତାଙ୍କୁ ବେଶି ବାଧେ । ସେଥିରେ ସେ ନିଜ ଦୁଃଖ କଷ୍ଟ ଭୁଲିଯାଆନ୍ତି ।

ଏହି ସୁପରିଂଟେଣ୍ଡେଣ୍ଟ, ଶିକ୍ଷକମାନଙ୍କର 'ହରି ଭାଇନା' ହେଉଛନ୍ତି ଆଶ୍ଚର୍ଯ୍ୟ ହରିହର ଦାସ । ପରେ ତାଙ୍କୁ ସମସ୍ତେ ଡାକିଲେ ଆଶ୍ଚର୍ଯ୍ୟ ମହାଶୟ ବୋଲି । ଦେଶର ସବୁ ସହର, ସବୁ ଗାଁ ଗଣ୍ଡାର ଲୋକେ ଏହି ଆଶ୍ଚର୍ଯ୍ୟ ମହାଶୟଙ୍କୁ ଆଦର କରୁଥିଲେ, ଭକ୍ତି କରୁଥିଲେ, ଦେଖିଲେ ଗୋଡ଼ତଳେ ପଡୁଥିଲେ । ଆଶ୍ଚର୍ଯ୍ୟ ମହାଶୟ ମଧ୍ୟ ଯାହାକୁ ଦେଖନ୍ତି, ତା ଉପରେ ସ୍ନେହ ସୋହାଗ ଢାଳି ଦିଅନ୍ତି । ହସି ହସି ତାର କୁଶଳ ମଙ୍ଗଳ ପଚାରନ୍ତି । ସତେ ଯେପରି ସମସ୍ତେ ତାଙ୍କର ନିଜର ପିଲା; ସେ ସମସ୍ତଙ୍କର ମୁରବି—ବାପ କି ବଡ ଭାଇ । ତାଙ୍କର କେହି ଶତ୍ରୁ ନଥିଲେ, ତାଙ୍କ ପାଖରେ କେହି ପର ନଥିଲେ—ସମସ୍ତେ ଆପଣାର, ସମସ୍ତେ ନିଜ ଲୋକ । ଏତେ ସ୍ନେହ ଶ୍ରଦ୍ଧା ସାଧାରଣ ମନୁଷ୍ୟ ପାଖରେ ଦେଖିବାକୁ ମିଳେ ନାହିଁ । ସେ ସ୍ନେହର ସୀମା ନାହିଁ କି ଶ୍ରଦ୍ଧାର ଅନ୍ତ ନାହିଁ । କେବଳ ସେଇଥିପାଇଁ ଆଶ୍ଚର୍ଯ୍ୟ ମହାଶୟ ସମସ୍ତଙ୍କର ପୂଜ୍ୟ, ସମସ୍ତଙ୍କର ନମସ୍ୟ ହୋଇଥିଲେ । ତାଙ୍କ ନାମ ମନେ ପଡ଼ିଲେ ପିଲା, ବୁଢ଼ା ସମସ୍ତଙ୍କ ମୁଣ୍ଡ ନଇଁ ଯାଉଥିଲା ।

## —ପିଲାଦିନ—

ଆଚାର୍ଯ୍ୟ ହରିହର ଜନ୍ମ ହୋଇଥିଲେ ପୁରୀ ଜିଲାର ସାକ୍ଷୀଗୋପାଳରେ । ସେଠାରେ ଶ୍ରୀରାମଚନ୍ଦ୍ରପୁର ବୋଲି ଗୋଟିଏ ବଡ଼ ଗ୍ରାମ ଅଛି । ସେ ଗ୍ରାମରେ ବହୁତ ପଣ୍ଡିତ, ସାଧୁଲୋକ ଜନ୍ମିଛନ୍ତି । ହରିହରଙ୍କ ବାପା ମହାଦେବ ବ୍ରହ୍ମା ମଧ୍ୟ ଜଣେ ବଡ଼ ପଣ୍ଡିତ ଓ ଧାର୍ମିକ ଲୋକ ଥିଲେ । ସେ ପ୍ରତିଦିନ ଢଅଁ ଦର୍ଶନ ନ କଲେ ପାଣି ଟୋପା ପିଉ ନ ଥିଲେ । ସେଇଥିପାଇଁ ଗାଁରେ ତାଙ୍କର ଖାତିର ଖୁବ୍ ଥିଲା । ଗ୍ରାମର ଲୋକେ ପ୍ରତି କଥାରେ ବ୍ରହ୍ମାଙ୍କଠାରୁ ଆସି ଉପଦେଶ ନେଉଥିଲେ । ନିଜର ଭଲମନ୍ଦ, ହାନିଲାଭ ବ୍ରହ୍ମାଙ୍କ ପାଖରେ ଜଣାଉଥିଲେ । ପୁରାଣ ଶାସ୍ତ୍ରମାନଙ୍କରେ ଅଛି; ସ୍ୱର୍ଗର ଦେବତାମାନେ କିଛି ଆପଦ ବିପଦ ପଡ଼ିଲେ ବ୍ରହ୍ମାଙ୍କ ଶରଣ ପଶୁଥିଲେ । କାରଣ ବ୍ରହ୍ମା ସମସ୍ତଙ୍କର ମୁରବି—ତାଙ୍କୁ 'ପିତାମହ' ଅର୍ଥାତ୍ ଅଜା ବୋଲି ସମସ୍ତେ ଡାକନ୍ତି । ଶ୍ରୀରାମଚନ୍ଦ୍ରପୁରର ଏ ମହାଦେବ ବ୍ରହ୍ମା ମଧ୍ୟ ଠିକ୍ ସେହି ସ୍ୱର୍ଗର ବ୍ରହ୍ମାଙ୍କ ପରି ଗାଁର ମୁରବି; ସମସ୍ତଙ୍କ ଦୁଃଖ ସୁଖ ବୁଝିବାକୁ ଆଗ । ସମସ୍ତେ ଯେପରି ତାଙ୍କ ନିଜର ପିଲା କୁଟୁମ୍ବ ।

ହରିହର ୧୮୮୧ ମସିହା ଫେବ୍ରୁୟାରୀ ମାସ ୧୬ ତାରିଖରେ ଜନ୍ମ ହୋଇଥିଲେ । ସେ ବାପମାଙ୍କର ବଡ଼ ପୁଅ । ବ୍ରହ୍ମାଙ୍କର ପୁଅ ହୋଇଛି— ଏ ସମ୍ବାଦରେ ଘରର ଲୋକେ ଯେତିକି ଖୁସି ହେଲେ, ଗ୍ରାମର ଲୋକେ ମଧ୍ୟ ସେତିକି ପୁଲକି ଉଠିଲେ । ଏହି ଗୋରା ତକତକ ଗୁଲ୍ଗୁଲିଆ ପିଲାଟିକୁ ଦେଖି ସମସ୍ତେ ସେତେବେଳେ ଭାବିନେଲେ, ପିଲାଟି ନିଶ୍ଚୟ ଗ୍ରାମର ମୁହଁ ଉଜ୍ଜ୍ୱଳ କରିବ । ପ୍ରକୃତରେ ଏକା ଗ୍ରାମ କାହିଁକି, ସାରା ଓଡ଼ିଶା ଦେଶ ତାଙ୍କ ସକାଶେ ପବିତ୍ର ହୋଇଛି । ଅସଂଖ୍ୟ ବାଲିଗରଡ଼ା ଭିତରେ ଗୋଟିଏ ମାଣିକ୍ୟ ପଡ଼ିଥିଲେ ଯେପରି ତାହା ଚକ୍‌ଚକ୍ ଦେଖାଯାଏ, ଲୋକେ ଆଦର କରି ଗୋଟାଇ ନିଅନ୍ତି; ସେହିପରି ହରିହର ଦେଶର ମଣିଷଙ୍କ ଭିତରେ ମାଣିକ୍ୟପରି ଉଜ୍ଜ୍ୱଳୁଥିଲେ । ଦେଶର ଲୋକେ ତାଙ୍କୁ ଶ୍ରଦ୍ଧା ଭକ୍ତି କରୁଥିଲେ । ଦେଖିଲେ ଆନନ୍ଦରେ ମୁଣ୍ଡିଆ ମାରୁଥିଲେ ।

ହରିହରଙ୍କ ମାଆଙ୍କ ନାମ ଶ୍ରଦ୍ଧାଦେବୀ । ତାଙ୍କ ହୃଦୟରେ ମମତା ଯେମିତି ଶ୍ରଦ୍ଧା ପୂରି ରହିଥିଲା । ଗ୍ରାମର ସବୁ ପିଲାଙ୍କୁ ସେ ନିଜର ପୁଅଝିଅ ଭଳି ମନେ କରୁଥିଲେ । ହରିହର ତାଙ୍କଠାରୁ ସେ ଗୁଣଟିକ ପୂରା ମାତ୍ରାରେ ହାସଲ କରିଛନ୍ତି ।

ଖେଳ କଉତୁକରେ ଶିଶୁ ଅବସ୍ଥା କଟି ଯାଉଥିଲା । ବାପ ମାଆଙ୍କ ଆଦର, ସାଇ ଓ ଗ୍ରାମ ଲୋକଙ୍କ ଅସରନ୍ତ ସ୍ନେହ ଶ୍ରଦ୍ଧାରେ ହରିହର ବଢ଼ିବାକୁ ଲାଗିଲେ । କିନ୍ତୁ ଏ ସୁଖ ବିଧାତା ସହିଲା ନାହିଁ । ହରିହରଙ୍କୁ ଯେତେବେଳେ ମୋଟେ ତିନି ବର୍ଷ ବୟସ, ସେତେବେଳେ ମା ଶ୍ରଦ୍ଧାଦେବୀ ତାଙ୍କୁ ଛାଡ଼ି ଦୁନିଆରୁ ଚାଲିଗଲେ । ତିନି ବର୍ଷର ଶିଶୁ ମାଆକୁ ନ ଦେଖି ପହିଲେ କେତେ ଦିନ ଖୁବ୍ କାନ୍ଦିଲେ, ଝୁରି ହେଲେ । କିନ୍ତୁ ମହାଦେବ ବ୍ରହ୍ମା ଏକାବେଳକେ ତାଙ୍କର ବାପ ଓ ମା ଉଭୟ ହେଲେ । ହରିହର ମାଆଙ୍କ ଅଭାବ ଆଉ ଜାଣିପାରିଲେ ନାହିଁ ।

ହରିହର ତ ଜନ୍ମ ହୋଇଥିଲେ ଦେଶମା ପାଇଁ; ଗୋଟିଏ ମନୁଷ୍ୟ ମାଆର ଭକ୍ତିରେ ତାଙ୍କ ମନ ସୀମାବଦ୍ଧ ହୋଇ ରହନ୍ତା କିପରି ?

ପାଞ୍ଚ ବର୍ଷ ବେଳେ ତାଙ୍କର ଖଡ଼ିଛୁଆଁ ହେଲା । ଗାଁ ସ୍କୁଲରେ ବସି ସେ ପାଠପଢ଼ା ଆରମ୍ଭ କଲେ । ଭଗବାନ ମହାନ୍ତି ନାମରେ ଜଣେ ଲୋକ ଗାଁ ସ୍କୁଲର ମାଷ୍ଟର ଥାଆନ୍ତି । ଅଙ୍କ ପାଠରେ ସେ ଖୁବ୍ ଧୁରନ୍ଧର । ହରିହର ବେଶ୍ ବୁଦ୍ଧିମାନ୍; ଥରେ ତାଙ୍କୁ ଯେଉଁ କଥାପଦକ କହିଦିଆଯାଏ, ତାହା ସବୁଦିନପାଇଁ ତାଙ୍କ ମନେ ରହିଯାଏ । ଶିକ୍ଷକ ଏପରି ଗୋଟିଏ ଛାତ୍ର ପାଇ ଖୁସି ହୋଇଗଲେ । ସେ ନିଜର ଯେତେ ବିଦ୍ୟାବୁଦ୍ଧି ଥିଲା, ସେ ସବୁଯାକ ହରିହରଙ୍କୁ ଦେଇଦେବାକୁ ଅସ୍ଥିର ହୋଇ ଉଠିଲେ । ହରିହର ମଧ୍ୟ ଶିକ୍ଷକଙ୍କ ସ୍ନେହ ଶ୍ରଦ୍ଧା ପାଇ ସବୁବେଳେ ତାଙ୍କର ପାଖରେ ରହିବାକୁ ମନ କଲେ ।

ତିନି ବର୍ଷ ମଧ୍ୟରେ ଗାଁ ପାଠଶାଳାର ସବୁ ପାଠ ହରିହର ହାସଲ କରିନେଲେ । ଆନନ୍ଦରେ ଭଗବାନ ତାଙ୍କୁ ଆଶୀର୍ବାଦ କରି ନିଜ ପାଠଶାଳାରୁ ବିଦାୟ ଦେଲେ ।

ସେତେବେଳେ ସେ ଗାଁରେ ଗୋଟିଏ ଭର୍ଣ୍ଣାକୁଲର ସ୍କୁଲ ଥିଲା । ଆଜିକାଲି ମାଇନର ସ୍କୁଲରେ ଯେଉଁସବୁ ପାଠ ପଢ଼ାଯାଏ, ଆଗେ ଭର୍ଣ୍ଣାକୁଲର ସ୍କୁଲରେ ସେହି ସବୁ ପାଠ ପଢ଼ାଯାଉଥିଲା । କେବଳ ଇଂରେଜୀ ପଢ଼ାଣି ହେଉ ନ ଥିଲା । ସାହିତ୍ୟ ଓ ଅଙ୍କଶାସ୍ତ୍ର ସେ ସ୍କୁଲର ପ୍ରଧାନ ବିଷୟ ଥିଲା ।

ହରିହର ସେହି ଭର୍ଣ୍ଣାକୁଲର ସ୍କୁଲରେ ନାମ ଲେଖାଇଲେ । ଅଳ୍ପଦିନ ଭିତରେ ସବୁ ପିଲାଙ୍କ ମଧ୍ୟରେ ସେ ଜଣାଶୁଣା ହୋଇଗଲେ । ଭଲ ତ ପଢ଼ନ୍ତି, ଆଉ ସବୁ କାମରେ ମଧ୍ୟ ଧୁରନ୍ଧର ହୋଇ ବାହାରନ୍ତି । ତେଣୁ ସ୍କୁଲର ପିଲାଏ ଯେପରି ଜଣେ ଆଗଧାଡ଼ି ସାଙ୍ଗ ପାଇଲେ, ଶିକ୍ଷକମାନେ ମଧ୍ୟ ସେହିପରି ଜଣେ ଉପଯୁକ୍ତ ଛାତ୍ର ପାଇଲେ ।

ବିଶେଷତଃ ମଧୁସୂଦନ ମିଶ୍ର ବୋଲି ଜଣେ ଶିକ୍ଷକ ସେ ସ୍କୁଲରେ ଥିଲେ । ହରିହରଙ୍କୁ ସେ ଗୋଟାସୁଦ୍ଧା ନିଜର କରିନେଲେ । ମଧୁସୂଦନ ମିଶ୍ରଙ୍କୁ ଗାଁରେ ସମସ୍ତେ ଏକଘରିଆ କରିଥାଆନ୍ତି । ସେ ସମୟରେ ଯେପରି ଛୁଆଁଛୁଇଁ; ଜାତିମାତି ଥିଲା, ମଧୁସୂଦନ ସେଥିରୁ ଏକାବେଳକେ ବାହାରି । ସେତେବେଳେ ଲୋକେ ଜାତିଭେଦ ପ୍ରଥାକୁ ଯୋରରେ ମାନି ଚଳୁଥିଲେ । ବାଉରି, ହାଡ଼ି, ଡମ, ପାଣଜାତି ଲୋକର ଛୁଇଁ ପଡ଼ିଲେ ବ୍ରାହ୍ମଣ କରଣ-ମାନେ ଅଥୟ ହୋଇ ଉଠୁଥିଲେ । ସେମାନେ ଗାଁ ଦାଣ୍ଡରେ ଚାଲିପାରିବେ ନାହିଁ, ବଡ଼ ପାଟିରେ କଥା କହିପାରିବେ ନାହିଁ । ମଧୁସୂଦନ ମିଶ୍ର କହିଲେ, ସବୁ ମଣିଷ ତ ଏକ । ସେ ହାଡ଼ି ବାଉରି ହେଲେ ବୋଲି କଅଣ କୁକୁର ବିଲୁଆଙ୍କ ଠାରୁ ହୀନ ହୋଇଗଲେ ? ସେ ସମୟରେ ଏହା କହିବା କମ୍ ସାହସର କଥା ନୁହେଁ । ମଧୁସୂଦନ ଯେ ଖାଲି ମୁହଁରେ କହିଲେ, ତାହା ନୁହେଁ; ସେ ହାଡ଼ି ବାଉରିଙ୍କ ସହିତ ମିଶିଲେ । ଏହା ଦେଖି ଗ୍ରାମର ମୁଖିଆ ମୁଖିଆ ଲୋକେ ରାଗିଗଲେ, ତାଙ୍କୁ ଏକଘରିଆ କଲେ । ନାନା ଅସୁବିଧାରେ ପକାଇଲେ ।

ଯେତେ ଦୁଃଖ କଷ୍ଟ ପାଇଲେ ମଧ୍ୟ ମଧୁସୂଦନ ମିଶ୍ର ଦବିଲେ ନାହିଁ । ବ୍ରାହ୍ମଣମାନଙ୍କ ମଧ୍ୟରେ ଯେତେ ଖରାପ କଥା ଅଛି, ତାହା ଦୂର କରିବାକୁ

ସେ ଲାଗିପଡ଼ିଲେ । ହରିହର ତାଙ୍କର ଏ ସାହସ, ଏ ଦମ୍ଭ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ, ତାଙ୍କର ପ୍ରିୟ ଶିଷ୍ୟ ହେଲେ । ମିଶ୍ରେ ମଧ୍ୟ ହରିହରଙ୍କ ଭଲ ଗୁଣ ପାଇ ତାଙ୍କୁ ନିଜ ମତ ଅନୁସାରେ ଶିକ୍ଷା ଦେଲେ ।

ଚାରି ବର୍ଷ ପରେ ହରିହର ଭର୍ଣ୍ଣାକୁଲାର ସ୍କୁଲରୁ ପାଶ୍ କଲେ. ଭର୍ଣ୍ଣାକୁଲାର ବୃତ୍ତି ମଧ୍ୟ ପାଇଲେ । ସେପର୍ଯ୍ୟନ୍ତ ସେ ଅଞ୍ଚଳର କୌଣସି ପିଲା ବୃତ୍ତି ପାଇ ନ ଥିଲେ କି ସେ ସ୍କୁଲରୁ କେହି ପିଲା ମଧ୍ୟ ବୃତ୍ତି ପାଇ ନ ଥିଲେ । ପ୍ରଥମେ ହରିହର ବୃତ୍ତି ପାଇବାରୁ ସ୍କୁଲର ଶିକ୍ଷକମାନେ ଯେପରି ଖୁସି ହେଲେ, ଗ୍ରାମବାସୀ ମଧ୍ୟ ସେହିପରି ଖୁସି ହେଲେ ।

## —ପ୍ରଥମ ସେବା—

ହରିହର ପୁରୀ ଜିଲା ସ୍କୁଲରେ ନାମ ଲେଖାଇଲେ । ସେ ସମୟରେ ବ୍ରାହ୍ମଣ ପଣ୍ଡିତମାନେ ନିଜ ନିଜ ପିଲାଙ୍କୁ ସ୍କୁଲକୁ ପଠାଉ ନ ଥିଲେ । ସେମାନେ ଭାବୁଥିଲେ, ପିଲା ଇଂରାଜୀ ପାଠ ପଢ଼ି ଜାତି ହରାଇବ, ଖ୍ରୀଷ୍ଟାନ ହୋଇଯିବ, ଅଖାଦ୍ୟ ଖାଇବ ।

ଆମ ଦେଶରେ ପ୍ରଥମେ ଯେତେବେଳେ ଇଂରାଜୀ ସ୍କୁଲ ବସିଲା, ସେତେବେଳେ ଏହିପରି କେତେକ ଘଟଣା ଘଟିଥିଲା । ସେତେବେଳେ ଯେଉଁମାନେ ସ୍କୁଲରେ ପାଠ ପଢ଼ି ନାମ କଲେ, ସେମାନଙ୍କ ମଧ୍ୟରୁ କିଏ ଖ୍ରୀଷ୍ଟାନ ହେଲେ, କିଏ ପଇତା ଛିଣ୍ଡାଇ ବ୍ରାହ୍ମଧର୍ମ ଗ୍ରହଣ କଲେ, କେତେକ ମଦ ଖାଇଲେ । ଏହା ଦେଖି ପଣ୍ଡିତମାନେ ପ୍ରମାଦ ଗଣିଲେ । ସେମାନେ ଭାବିଲେ, ସବୁ ପିଲା ଏହିପରି ହୋଇଯିବେ । ତେଣୁ ଇଂରାଜୀ ସ୍କୁଲମାନଙ୍କୁ ପିଲା ପଠାଇବାକୁ ସାହସ କଲେ ନାହିଁ ।

ହରିହରଙ୍କ ବାପା ମରହଟି ପଣ୍ଡିତ ହେଲେ ମଧ୍ୟ ପୁଅକୁ ସ୍କୁଲକୁ ପଠାଇବାକୁ ଆପତ୍ତି କଲେ ନାହିଁ । ସେ ପିଲାଦିନୁ ପୁଅର ମତିଗତି ଭଲରୂପେ ବୁଝିଯାଇଥିଲେ । ସେ ଜାଣିଥିଲେ ଯେ, ହରିହର କେବେହେଲେ ଅବାଟରେ ଯିବ ନାହିଁ କି ଅନ୍ୟାୟ କରିବ ନାହିଁ ।

ହରିହର ଇଂରାଜୀ ସ୍କୁଲରେ ପଢ଼ିବାକୁ ଯାଉଥିଲେ । ପୁଅଙ୍କୁ ନେଇ ସ୍କୁଲରେ ନାମ ଲେଖାଇଲେ । ସେ ସମୟରେ ହରିହରଙ୍କ ମୁଣ୍ଡରେ ଚୁଟି ଥାଏ । ସେ ସମୟରେ ଶ୍ରୀରାମଚନ୍ଦ୍ରପୁର ଶାସନରୁ ଯେତେ ପିଲା ସ୍କୁଲରେ ପଢ଼ୁଥାନ୍ତି, ସମସ୍ତେ ଚୁଟି ରଖିଥାଆନ୍ତି । ଅନ୍ୟ ପିଲାମାନେ ଏମାନଙ୍କ ଚୁଟି କାଟି ପକାଇବାକୁ ଫିକର କଲେ । ସବୁ ପିଲାଏ କହିଲେ, "ହରି ଭାଇନା ଆମ ଭିତରେ ବଡ଼ । ଯଦି ତାଙ୍କ ଚୁଟି କାଟି ହୋଇଯିବ, ତେବେ ଆମେ ଚୁଟି କାଟିବୁ ।" କିନ୍ତୁ ହରିହରଙ୍କୁ ସାହସ କରି କେହି ଏ କଥା କହି ନ ଥାନ୍ତି ।

ଥରେ କଥା ହେଲା, ଚୁଟି ରଖିବା ଭଲ କି ମନ୍ଦ, ଏ ବିଷୟରେ ଆଲୋଚନା କରାଯିବ । ହରିହରଙ୍କୁ ସେଠାକୁ ଡକାଗଲା । କେତେ ଯୁକ୍ତିତର୍କ ହେଲା । ହରିହର କହିଲେ, "ଚୁଟି ରଖିଲେ ତ ଆମର କିଛି କ୍ଷତି ହେଉ ନାହିଁ । ତେବେ ମୁରବିମାନଙ୍କ କଥା ଅମାନ୍ୟ କରିବା କାହିଁକି ? ତାଙ୍କ ମନରେ କଷ୍ଟ ଦେବା କ'ଣ ଆମର ଉଚିତ ?"

କିନ୍ତୁ ଅନ୍ୟ ପିଲାମାନେ ଆଗରୁ କଇଞ୍ଚିଟିଏ ଠିକ୍ କରି ରଖି-ଥାଆନ୍ତି । ଏହିପରି ଆଲୋଚନା ଚାଲିଥିବାବେଳେ, କେହି ଜଣେ ସାଙ୍ଗ ଚୁପ୍ କିନି ପଛଆଡ଼େ ଚୁଟିଟି କାଟିଦେଲେ । ସମସ୍ତେ ହସି ଉଠିଲେ । ହରିହର ମୁଣ୍ଡରେ ହାତ ମାରି ଦେଖିଲେ ଚୁଟି ନାହିଁ । ତଥାପି ସେ ଦୁଃଖିତ ହେଲେ ନାହିଁ । କହିଲେ, ସାଙ୍ଗ ପିଲା ଯଦି ଏଥିରେ ଖୁସି ହେଉଛନ୍ତି, ତେବେ ତାହା ହିଁ ହେଉ ।

ପୂଜା ପର୍ବରେ ସ୍କୁଲ ଛୁଟି ହେଲେ ପିଲାମାନେ ଗାଆଁକୁ ଆସନ୍ତି । ସାଧାରଣତଃ ଯେଉଁ ପିଲା ସ୍କୁଲରେ ପଢ଼ୁଥାଆନ୍ତି, ତାଙ୍କ ମନରେ ଗର୍ବ ବଢ଼ିଥାଏ । ଗାଆଁକୁ ଆସିଲେ ଅନ୍ୟ ଲୋକଙ୍କ ସହିତ ମିଶନ୍ତି ନାହିଁ । ଲୋକଙ୍କ ସାଙ୍ଗରେ ବେଶି କଥାବାର୍ତ୍ତା କରନ୍ତି ନାହିଁ । ନିଜକୁ ଭାରି ପଣ୍ଡିତ ମନେକରନ୍ତି ।

କିନ୍ତୁ ହରିହର ଗାଆଁକୁ ଆସିଲେ ଆଗ ଯାଇ ସବୁ ଲୋକଙ୍କୁ ସଙ୍ଗେ ଭେଟି ଆସନ୍ତି । ନିଜଠାରୁ ଯେ ବୟସରେ ବଡ଼, ତାଙ୍କ ଗୋଡ଼ତଳେ ମୁଣ୍ଡିଆ

ମାରନ୍ତି, ତାଙ୍କ ହାନିଲାଭ ବୁଝନ୍ତି । ଯେଉଁମାନେ ସାଙ୍ଗ ବା ବୟସରେ ସାନ, ସେମାନଙ୍କ ସାଙ୍ଗରେ ଖେଳନ୍ତି, ବୁଲନ୍ତି । ସମସ୍ତଙ୍କୁ ନଜର କରିନେଇଥାନ୍ତି । ତେଣୁ ଗ୍ରାମରେ ସାନଠାରୁ ବୁଢ଼ାଯାଏ ସମସ୍ତେ ତାଙ୍କୁ ଆଦର କରନ୍ତି । ଆଜ କେହି ଚୁଟି କାଟିଥିଲେ ଗ୍ରାମର ବୁଢ଼ା ବୁଢ଼ା ପଣ୍ଡିତେ ତାଙ୍କୁ ଗାଳି ଦେଇଥାନ୍ତେ, କେତେ କଥା କହିଥାନ୍ତେ । କିନ୍ତୁ ହରିହର ଚୁଟି କାଟିଛନ୍ତି ଦେଖି କେହି କିଛି କହିଲେ ନାହିଁ । ସମସ୍ତେ ଭାବିଲେ—ହରିଟି ଆମର ଯୋଗ୍ୟ ପିଲା । ସେ ଯାହା ଠିକ୍ ଭାବୁଛି, ତା କରୁଛି । ସେ କେବେ ଅନ୍ୟାୟ କରିବ ନାହିଁ ।

ଗ୍ରାମର ବୁଢ଼ା ପଣ୍ଡିତମାନଙ୍କର ହରିହରଙ୍କ ଉପରେ ଯେଉଁ ବିଶ୍ୱାସ ଥିଲା, ତାହା ବିଫଳ ହୋଇ ନାହିଁ । ସାରା ଓଡ଼ିଶା ଲୋକଙ୍କର ସେହି ହରିହରଙ୍କ ଉପରେ ଦୃଢ଼ ବିଶ୍ୱାସ ଥିଲା । କୌଣସି ଅନ୍ୟାୟ, କିଛି ଅସତ୍ୟ ସେ ତାଙ୍କ ପାଖ ପଶି ନାହିଁ, ଏ କଥା ସମସ୍ତେ ଭଲରୂପେ ଜାଣି ଥିଲେ ।

ହରିହର ସ୍କୁଲରେ ପଢ଼ୁଥିବାବେଳେ ପୁରୀରେ ଭୀଷଣ ଭାବରେ ହଇଜା ଲାଗିଲା । ଶହ ଶହ ଲୋକ ବାଟଘାଟରେ ପଡ଼ି ଛଟପଟ ହୋଇ ମଲେ । ସେଥିରୁ ଅଧିକାଂଶ ଦୂର—ଦେଶରୁ ଜଗନ୍ନାଥଙ୍କ ଦର୍ଶନକୁ ଆସିଥାଆନ୍ତି । ଏଠାରେ ଘରଦ୍ୱାର ନାହିଁ କି ବନ୍ଧୁ ବାନ୍ଧବ, ଅନ୍ୟ ଲୋକ କେହି ନାହାନ୍ତି । ସେମାନଙ୍କୁ ବିପଦରେ ରକ୍ଷିବ କିଏ ?

ଏହା ଦେଖି ହରିହର ଥୟ ହୋଇ ରହିପାରିଲେ ନାହିଁ ହଇଜା-ରୋଗୀଙ୍କ ସେବା କରିବାପାଇଁ ଅଣ୍ଟା ଭିଡ଼ି ବାହାରି ପଡ଼ିଲେ । ତାଙ୍କ ଦେଖାଦେଖି ଆଉ କେତେକ ସ୍କୁଲପିଲା ମଧ୍ୟ କାମରେ ଲାଗିଗଲେ । ହରିହର ସେମାନଙ୍କ ନେତା ହେଲେ । ପିଲାମାନେ ଚାରିଆଡ଼େ ବୁଲିଲେ । ଯେଉଁଠାରେ ହଇଜାରୋଗୀ ପଡ଼ିଥିବାର ଦେଖିଲେ, ସେମାନଙ୍କ ସେବା କଲେ । ରୋଗୀଙ୍କ ଝାଡ଼ାବାନ୍ତି ସଫା କରିଦେଲେ, ତାଙ୍କ ଲୁଗାପଟା ବଦଳାଇ ଦେଲେ । ରୋଗୀଙ୍କୁ ଉଠାଇ ଡାକ୍ତରଖାନାକୁ ନେଲେ । ଔଷଧ

ଆଣି ଦେଲେ, ପଥି ବାନ୍ଧି ଦୂଆଇଲେ । ପିଲମାନେ ବହୁଦିନ ଲାଗି ଏତେ ସେବା କଲେ ଯେ, ନିଜର ମା ଭଉଣୀ, ବାପ ଭାଇ ବି ସେପରି ସେବା କରିବେ ନାହିଁ । ଲୋକେ ଯେ ଅନେକେ ହୋଇ ମରୁଥିଲେ, ତାହା କମିଗଲା । ବହୁ ରୋଗୀ ଭଲ ହେଲେ । ପିଲାମାନଙ୍କୁ ଧନ୍ୟ ଧନ୍ୟ କହିଲେ, ଆଶୀର୍ବାଦ କଲେ ।

ପୁରୀରେ ବାର ମାସରେ ତେର ପର୍ବ ଲାଗି ରହିଥାଏ । ପ୍ରତିଦିନ ବାହାରୁ ବହୁତ ଲୋକ ଜଗନ୍ନାଥ ଦର୍ଶନକୁ ଆସନ୍ତି; ଏହିପରି ରୋଗ ବେମାରୀରେ ପଡ଼ନ୍ତି । ହରିହର ଓ ତାଙ୍କ ସାଙ୍ଗ ପିଲା ଖୋଜି ଖୋଜି ସେମାନଙ୍କ ସେବା କରନ୍ତି ।

ବାହାରେ ଏସବୁ କାମ କରୁଥିଲେ ମଧ୍ୟ ସେ ପାଠ ପଢ଼ାରେ କେବେ ହେଳା କରୁ ନ ଥିଲେ । ସବୁ ବର୍ଷ କ୍ଲାସରେ ସେ ପ୍ରଥମ ହେଉଥିଲେ । ବହୁତ ପୁରସ୍କାର ପାଉଥିଲେ । ଏପରି କି କୁସ୍ତି କସରତରେ ମଧ୍ୟ ସେ ଖୁବ୍ ନାମ କରିଥିଲେ, ସେଥିପାଇଁ ପ୍ରଶଂସା ପାଉଥିଲେ । ଶେଷରେ ପ୍ରବେଶିକା ପରୀକ୍ଷା ଦେଲେ; ସେଥିରେ ବୃତ୍ତି ପାଇଲେ ।

## —ଗୁଣୀକୁ ଗୁଣୀ ଚିହ୍ନେ—

ପ୍ରବେଶିକା ପରୀକ୍ଷାରେ ବୃତ୍ତି ପାଇ ହରିହର କଟକ ଆସିଲେ । ରେଭେନ୍ସା କଲେଜରେ ଏଫ୍. ଏ. ପଢ଼ିଲେ ।

ଏହିଠାରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସହିତ ତାଙ୍କର ମିଳନ ହେଲା । ଗୁଣୀକୁ ଗୁଣୀ ଚିହ୍ନେ । ଗୋପବନ୍ଧୁ ହରିହରଙ୍କୁ ଦେଖିଲାକ୍ଷଣି ଜାଣିଗଲେ ଯେ, ଏ ଟୋଟିଏ ଖାଣ୍ଟି ସୁନା । ହରିହର ମଧ୍ୟ ଗୋପବନ୍ଧୁଙ୍କୁ ଗୁରୁ ବୋଲି ମନେ କଲେ । ଆଗରୁ ତ ଦୁଃଖୀ ଦରିଦ୍ର, ରୋଗୀଶୋଷୀଙ୍କ ସେବା କରିବା ଝୁଙ୍କ ତାଙ୍କର ଥିଲା । ଗୋପବନ୍ଧୁଙ୍କଠାରୁ ଶିକ୍ଷା ପାଇ ବେଶି ଜୋରରେ ସେ କାମରେ ଲାଗି ପଡ଼ିଲେ । କେଉଁଠି ବଢ଼ିରେ ଗାଁ ଗଣ୍ଡା

ଭାସିଗଲା; କେଉଁଠି ଦୁର୍ଭିକ୍ଷ ଯୋଗୁ ଲୋକେ ଖାଇବାକୁ ପାଉ ନାହାନ୍ତି—ଏ ସବୁ ଖବର ପାଇଲାକ୍ଷଣି ଗୋପବନ୍ଧୁ ଓ ହରିହର ସେଠାକୁ ଦଉଡ଼ିଲେ । ଅଜଣା ଅଶୁଣା ଅଞ୍ଚଳରେ ଯାଇ ଲୋକଙ୍କୁ ବିପଦରୁ ଉଦ୍ଧାର କଲେ । ନିଜେ ଖିଆପିଆ ଭୁଲିଲେ, ଝଡ଼ବର୍ଷା, ଖରାକାକରରେ କଷ୍ଟ ପାଇଲେ, ଅଚିନାଗା ମଶାଣିରେ ବୁଲିଲେ । ଦୁଃଖୀଲୋକଙ୍କ ଦୁଃଖ ଦୂରାଇବା ହେଲା ତାଙ୍କର ପ୍ରଧାନ ବ୍ରତ ।

ଦୁଇ ବର୍ଷ ପରେ ହରିହର ଏଫ୍. ଏ. ପାଶ୍ କଲେ । ତା ପରେ କଲିକତା ଯାଇ ଓକିଲାତି ପଢ଼ିଲେ । କିନ୍ତୁ ଓକିଲାତି କରିବାକୁ ତାଙ୍କର ମନ ହେଲା ନାହିଁ । ମିଛ ନ କହିଲେ, ଅନ୍ୟାୟ ବାଟରେ ନ ଗଲେ ଓକିଲାତିରେ ପଇସା ମିଳିବ ନାହିଁ । ଏହା ଜାଣି ସେ ଆସି ସ୍କୁଲର ମାଷ୍ଟର ହେଲେ । ସେ ସମୟରେ ତାଙ୍କ ପରି ବଡ଼ ଗଣିତ ମାଷ୍ଟର ଆଉ କେହି ନ ଥିଲେ । ତେଣୁ ସବୁ ସ୍କୁଲରୁ ତାଙ୍କୁ ଡାକରା ଆସିଲା । କଟକର ପିଆରୀ-ମୋହନ ଏକାଡ଼େମୀରେ ସେ ପାଞ୍ଚ ବର୍ଷ ରହିଥିଲେ ।

ସେହି ସମୟରେ ତାଙ୍କ ବାପା ମହାଦେବ ବ୍ରହ୍ମା ମରିଗଲେ । ହରିହରଙ୍କର ଘରେ ଯାହା ଟିକିଏ ବନ୍ଧନ ଥିଲା; ତାହା ତୁଟିଗଲା । ଏଣିକି ସେ ଦେଶକାମରେ ପୂରାଦମରେ ଲାଗିପଡ଼ିଲେ ।

କାକଟପୁର ଅଞ୍ଚଳରେ ବଡ଼ ଦୁର୍ଭିକ୍ଷ ପଡ଼ିଲା । ଖାଇବାକୁ ନ ପାଇ ଲୋକେ ଛଟପଟ ହେଲେ । ବହୁ ଲୋକ ଗାଁ, ଘର ପିଲା କୁଟୁମ୍ବ ଛାଡ଼ି କିଏ କୁଆଡ଼େ ପଳାଇଗଲେ । ଅନେକ ମଲେ, କେତେକ ଗାଁ ଗାଁ ବୁଲି ଭିକ ମାଗିଲେ ।

ଏ ଖବର ପାଇ ହରିହର ଆଉ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ଗୋପବନ୍ଧୁଙ୍କ ସଙ୍ଗରେ ଯାଇ ସେ ଅଞ୍ଚଳ ବୁଲି ଲୋକଙ୍କ ସେବା କଲେ । ସହରମାନଙ୍କରେ ବୁଲି ଟଙ୍କା ଚାଉଳ ସଂଗ୍ରହ କଲେ । ତାହା ନେଇ ମଠରେ ଲୋକଙ୍କୁ ବାଣ୍ଟିଲେ । ଅସହାୟ ଲୋକଙ୍କର ସହାୟ ହେଲେ,

ଲୋକଙ୍କ ପାଟିରେ ମୁଠାଏ ମୁଠାଏ ଭାତ ଦେଲେ । ସେତେବେଳେ ଯେ ହରିହରଙ୍କ କାମ ଦେଖିଥିଲେ, ସେମାନେ କହନ୍ତି, ଏକା ହରିହର ଦଶ ଜଣ ଲୋକଙ୍କର କାମ କରନ୍ତି । ତାଙ୍କ ଯୋଗେ ଅଳ୍ପ ସମୟ ପରେ ସେ ଅଞ୍ଚଳ ଠିକ୍ ଥା ହେଲା; ଲୋକେ ଆଶ୍ୱସ୍ତ ହେଲେ ।

ଗୋପବନ୍ଧୁ ଆଉ ହରିହରଙ୍କୁ ପାଖରୁ ଛାଡ଼ିପାରିଲେ ନାହିଁ । ସେ ଯେଉଁ ସତ୍ୟବାଦୀ ସ୍କୁଲ ବସାଇଥିଲେ, ସେହି ସ୍କୁଲରେ ତାଙ୍କୁ ରଖାଇଲେ । ହରିହର ବୋର୍ଡିଂର ସୁପରିଂଟେଣ୍ଡେଣ୍ଟ ହେଲେ । ତାଙ୍କୁ ଆଚାର୍ଯ୍ୟ କୁହାଗଲା । ସେହି ଦିନୁ ସମସ୍ତେ ହରିହରଙ୍କୁ ଆଚାର୍ଯ୍ୟ ମହାଶୟ ବୋଲି ସମ୍ବୋଧନ କରିଥିଲେ ।

ସତ୍ୟବାଦୀ ସ୍କୁଲ ବୋର୍ଡିଂରେ ଶହ ଶହ ପିଲା ରହୁଥାଆନ୍ତି । ହରିହର ସେମାନଙ୍କ ହାନିଲାଭ ବୁଝନ୍ତି । ସେମାନଙ୍କୁ ନିଜର ପୁଅଠାରୁ ବଳି ଅଧିକ ମନେ କରନ୍ତି । ତେଣୁ ପିଲାମାନେ ମଧ୍ୟ ଆଚାର୍ଯ୍ୟ ମହାଶୟଙ୍କୁ ବାପ ପରି ଭକ୍ତି କରନ୍ତି । ଅନେକ ଅତି ଛୋଟପିଲା, ଯେଉଁମାନେ କି ଆଗରୁ ସ୍କୁଲକୁ ଆସିବାକୁ ଡରୁଥିଲେ, ସେମାନେ ଆଉ ଘରେ ରହିବାକୁ ଭଲ ପାଇଲେ ନାହିଁ । ଆଚାର୍ଯ୍ୟ ମହାଶୟଙ୍କ ସ୍ନେହ ବାପ ମାଙ୍କ ସ୍ନେହଠାରୁ ତାଙ୍କୁ ବେଶୀ ଭଲ ଲାଗିଲା ।

କେଉଁ ପିଲାର ମୁଣ୍ଡ ବଥାଇଲା, କାହାକୁ ଜର ହେଲା ବା ଅନ୍ୟ କିଛି ଦେହ ଖରାପ ହେଲା, ସାଙ୍ଗେ ସାଙ୍ଗେ ଆଚାର୍ଯ୍ୟ ମହାଶୟ ଯାଇ ତାର ତତ୍ତ୍ୱ ନିଅନ୍ତି, ସେବା କରନ୍ତି । ତାଙ୍କ ସେବାରେ ଦିନେ ଦୁଇ ଦିନ ମଧ୍ୟରେ ରୋଗ ଛାଡ଼ି ପଳାଏ ।

ଛୋଟ ଛୋଟ ପିଲାଙ୍କୁ ବେଶି କାଛୁ ହୁଏ । ଆଚାର୍ଯ୍ୟ ମହାଶୟଙ୍କର ପ୍ରତିଦିନ ସକାଳେ କାମ ହେଉଛି, ସେମାନଙ୍କ କାଛୁ ଧୋଇ ସଫା କରିବା । ସକାଳୁ ନିମପତ୍ର ପକାଇ ସେ ପାଣି ଗରମ କରନ୍ତି, ପିଲାମାନଙ୍କୁ ଗୋଟି ଗୋଟି ପାଖକୁ ଡାକି ସେମାନଙ୍କ କାଛୁ ଘା'ସବୁ ନିଜ ହାତରେ ଧୋଇ

ଦଅନ୍ତି । ପିଲମାନଙ୍କୁ ଘର କାଟେ । ଆଜ କେଉଁଠା ହୋଇଥିଲେ ସେମାନେ ଛୁଟିପିଟି ହୋଇ ପଳାଇ ଯାଆନ୍ତେ, ନ ହେଲେ କାନ୍ଦକାଟି ସେ ସ୍ଥାନ କମ୍ପାଇ ଦଅନ୍ତେ । ମାତ୍ର ଆଚାର୍ଯ୍ୟ ମହାଶୟଙ୍କ ପାଖରେ ପିଲାଙ୍କୁ ସେ କଷ୍ଟ କଷ୍ଟପର ଜଣା ଯାଏ ନାହିଁ । ତାଙ୍କ ସ୍ନେହପୂର୍ଣ୍ଣ କଥାରେ ପିଲା କାନ୍ଦ ଭୁଲିଯାଏ । ଜଣେ ଦୁଇ ଜଣ ନୁହନ୍ତି, ପ୍ରାୟ କୋଡ଼ିଏ ପଚିଶ ଜଣଙ୍କ କାଛୁଆ କାମ ନିତ୍ୟପ୍ରତି ଲାଗିଥାଏ । କାଛୁରୋଗୀଙ୍କୁ ଦେଖିଲେ ଅନେକେ ନାକ ଟେକନ୍ତି । କାଛୁ ଛୁଆଁ ରୋଗ—ନିଜ ଦେହକୁ ଡେଇଁବ ବୋଲି କେହି କେହି ଡରନ୍ତି । କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କର ସେଥିପ୍ରତି ଟିକିଏ ହେଲେ ଭ୍ରୂକ୍ଷେପ ନ ଥାଏ ।

## —ଅସହଯୋଗ ଆନ୍ଦୋଳନ—

ମହାତ୍ମା ଗାନ୍ଧି ଭାରତକୁ ସ୍ୱାଧୀନ କରିବା ଲାଗି ଅସହଯୋଗ ଆନ୍ଦୋଳନ କଲେ । ଉତ୍କଳମଣି ଗୋପବନ୍ଧୁ ଆମ ଓଡ଼ିଶାରୁ ପ୍ରଥମେ ସେ ଆନ୍ଦୋଳନରେ ଯୋଗ ଦେଲେ । ସତ୍ୟବାଦୀ ସ୍କୁଲକୁ ସେ ଜାତୀୟ ସ୍କୁଲ କରିଦେଲେ । ସ୍କୁଲର ସବୁ ଶିକ୍ଷକ ଓ ଛାତ୍ର ମଧ୍ୟ ଏହି ଆନ୍ଦୋଳନରେ ଲାଗିଗଲେ । ଏପର୍ଯ୍ୟନ୍ତ ହରିହର କେବଳ ସ୍କୁଲପିଲାଙ୍କର ଆଚାର୍ଯ୍ୟ ଥିଲେ । ସ୍କୁଲପିଲାଙ୍କ ସେବା କରୁଥିଲେ । ଏଣିକି ସମୁଦାୟ ଓଡ଼ିଶାର ସେବା କରିବାକୁ ବାହାରି ପଡ଼ିଲେ; ଓଡ଼ିଶାର ସବୁ ଲୋକଙ୍କର ଆଚାର୍ଯ୍ୟ ମହାଶୟ ହେଲେ ।

ଇଂରେଜମାନେ ତ ଏ ଦେଶ ଶାସନ କରୁଥିଲେ—ଆମ ଭାରତର ଥିଲେ ହର୍ତ୍ତାକର୍ତ୍ତା । ସେମାନେ ଲୋକଙ୍କ ଉପରେ ବଡ଼ ଅତ୍ୟାଚାର କରୁଥିଲେ । ଦେଶକୁ ସ୍ୱାଧୀନ କରିବା ପାଇଁ ଇଂରେଜମାନଙ୍କୁ ଏ ଦେଶରୁ ତଡ଼ିବା ପାଇଁ ମହାତ୍ମାଗାନ୍ଧୀ ଆନ୍ଦୋଳନ ଆରମ୍ଭ କରିଦେଲେ । ପଣ୍ଡିତ ଗୋପବନ୍ଧୁ ହେଲେ ତାଙ୍କର ବଡ଼ ଶିଷ୍ୟ । ସେ ଓଡ଼ିଶାରେ ଗାନ୍ଧୀଙ୍କ କଥା ପ୍ରଚାର କଲେ । ଆଚାର୍ଯ୍ୟ ହରିହର ମଧ୍ୟ ଗୋପବନ୍ଧୁଙ୍କ ଭଳି ସେ ଆନ୍ଦୋଳନରେ ଯୋଗଦେଲେ । ଗାଁ ଗାଁ ବୁଲି ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର କଲେ ।

ଦେଶର ଲୋକେ, ପିଲାବୁଢ଼ା, ଧନୀ ଗରିବ, ସରକାରୀ ଅଫିସର ସାଧାରଣ ବ୍ୟକ୍ତି - ସମସ୍ତେ ଆଚାର୍ଯ୍ୟ ହରିହରଙ୍କୁ ନିଜର ମୁରବି ଭଳି ମନେ କରୁଥିଲେ । ତେଣୁ ତାଙ୍କ କଥାକୁ କେହି ଲଙ୍ଘି ପାରିଲେ ନାହିଁ । ଆନ୍ଦୋଳନରେ ଯୋଗ ଦେଲେ । "ଇଂରେଜ ସରକାର ଆମ ଦେଶରୁ ଚାଲିଯାଅ" ବୋଲି ଦାବୀ କଲେ ।

ସେଥିପାଇଁ ଇଂରେଜ ସରକାର ତାଙ୍କୁ ଥରକୁ ଥର ଜେଲରେ ପୂରାଇଲେ । ଏହି ସବୁ ଦୁଃଖକଷ୍ଟ ସହି ନ ପାରି କେହି କେହି ଦବିଗଲେ, ଆନ୍ଦୋଳନ ଛାଡ଼ିଦେଲେ । ମାତ୍ର ଆଚାର୍ଯ୍ୟ ମହାଶୟ ତ କାଉଁରିଆ କାଠି— ଭାଙ୍ଗିବ ପଛକେ ନଇଁବ ନାହିଁ । ସେ ନଇଁଲେ ନାହିଁ, ବରାବର ଦେଶକାମରେ ଲାଗି ରହିଲେ ।

ଶେଷରେ ପ୍ରବଳ ପ୍ରତାପୀ ଇଂରେଜ ସରକାର ଗାନ୍ଧୀଙ୍କ ପାଖରେ ମୁଣ୍ଡ ନୁଆଁଇଲେ । ଏ ଦେଶ ଛାଡ଼ି ଚାଲିଗଲେ ।

ଦେଶ ସ୍ୱାଧୀନ ହେଲା ପରେ ଅନେକ ମନ୍ତ୍ରୀ ହେଲେ । କେତେକ ବଡ଼ ବଡ଼ ପାହ୍ୟାରେ ରହିଲେ । ପୂର୍ବର ଦୁଃଖ କଷ୍ଟ ଭୁଲିଯିବାକୁ ନାନା ଭୋଗବିଳାସରେ ମାତିଲେ । କିନ୍ତୁ ଆଚାର୍ଯ୍ୟ ମହାଶୟଙ୍କର ଟିକିଏ ହେଲେ ପରିବର୍ତ୍ତନ ହେଲା ନାହିଁ । ଦେଶଲୋକଙ୍କ ସେବା କରିବା, ଦୁଃଖୀ ଗରିବଙ୍କୁ ଆଶ୍ୱାସନା ଦେବା, ଯହାଙ୍କୁ ଅନ୍ୟମାନେ ଘୃଣା କରନ୍ତି, ତାଙ୍କୁ ନିଜର କରିବା ଆଚାର୍ଯ୍ୟ ମହାଶୟଙ୍କର ପ୍ରଧାନ କାମ । ଏହି କାମ ତାଙ୍କର ଜୀବନବ୍ୟାପୀ ଲାଗି ରହିଥିଲା ।

ଆଚାର୍ଯ୍ୟ ମହାଶୟଙ୍କର ଏହି ଗୁଣ ଦେଖି ମହାତ୍ମା ଗାନ୍ଧୀ ତାଙ୍କୁ ଖୁବ୍ ଭଲ ପାଉଥିଲେ । ଯେତେବେଳେ ଆଚାର୍ଯ୍ୟ ମହାଶୟଙ୍କୁ ଷାଠିଏ ବର୍ଷ ପୂରିଗଲା, ଦେଶର ଲୋକେ ତାଙ୍କର ଜୟନ୍ତୀ ଉତ୍ସବ କଲେ । ଦେଶବାସୀ ତାଙ୍କୁ ଏତେ ଭଲପାଆନ୍ତି ଯେ, ସମସ୍ତେ ଏ ଉତ୍ସବରେ ଆନନ୍ଦରେ ଯୋଗ ଦେଇଥିଲେ; ଆଚାର୍ଯ୍ୟ ମହାଶୟଙ୍କର ପୂଜା କରିଥିଲେ । ସେତେବେଳେ ମହାତ୍ମା ଗାନ୍ଧୀ ଲେଖିଥିଲେ—ମୋର ଭାରି ଇଚ୍ଛା, ମୁଁ ଆଜ ଆଚାର୍ଯ୍ୟ

ହରିହରଙ୍କ ପାଖରେ ରହି ତାଙ୍କୁ ଆଶୀର୍ବାଦ କରନ୍ତି । ଆମ ଭିତରେ ସେ ଜଣେ ଖାଣ୍ଟି ଦେଶସେବକ, ଅତି ସାଧୁ ଲୋକ ।

ମଜା ର କଥା ଆଚାର୍ଯ୍ୟ ହରିହର କେବେହେଲେ କାହାର ଉପରେ ରାଗନ୍ତି ନାହିଁ । ସେ ବିରକ୍ତ ହେବାର କେହି କେବେ ଦେଖି ନାହିଁ କି କାହାକୁ ଗାଳି ଦେବାର କେହି ଶୁଣି ନାହିଁ । ତଥାପି ତାଙ୍କୁ ପିଲାଠାରୁ ବଡ଼ ଯାଏ, ସେବକଠାରୁ ଧନୀ ଯାଏ ସମସ୍ତେ ଡରନ୍ତି, ପୁଣି ଭକ୍ତି କରନ୍ତି ।

ସ୍କୁଲ ବୋର୍ଡିଂରେ ସବୁ ରକମର ପିଲା ଥାଆନ୍ତି—ଭଲ ମନ୍ଦ, ସାଧୁ ଚୋର; ଶାନ୍ତ ଦୁଷ୍ଟ । କେହି କିଛି ଦୋଷ କଲେ ତାଙ୍କୁ ମାଡ଼ ଦେବା ତ ଦୂରର କଥା, କୌଣସି ପିଲା ମାଡ଼ ଖାଉଛି ଶୁଣିଲେ, ଆଚାର୍ଯ୍ୟ ମହାଶୟଙ୍କୁ ଜର ଆସିଯାଏ । କେହି କେବେହେଲେ ତାଙ୍କଠାରୁ ଗୋଟିଏ କଡ଼ାକଥା ଶୁଣି ନାହିଁ । ତଥାପି ସବୁ ପିଲା ଆଚାର୍ଯ୍ୟ ମହାଶୟଙ୍କୁ ଡରୁଥିଲେ । କାଳେ ଆଚାର୍ଯ୍ୟ ମହାଶୟ ଜାଣିପାରିବେ, ସେହି ଭୟରେ କୌଣସି ଦୋଷ କରିବାକୁ କେବେହେଲେ କେହି ସାହସ କରୁ ନ ଥିଲେ ।

ପିଲାଙ୍କ କଥା ଛାଡ଼ । ବଡ଼ ବଡ଼ ଲୋକେ, ମନ୍ତ୍ରୀ, ହାକିମ, ଜଣାଶୁଣା ନେତାମାନେ ସୁଦ୍ଧା ଆଚାର୍ଯ୍ୟ ମହାଶୟଙ୍କ ନାମ ଶୁଣିଲେ ଶଙ୍କି ଯାଉଥିଲେ । ତାଙ୍କ ଭୟରେ କିଛି ଅନ୍ୟାୟ କାମ କରିବାକୁ ମନ ବଳାଉ ନ ଥିଲେ ।

ଥରେ ଜଣେ ମନ୍ତ୍ରୀ ସିଗାରେଟ ଖାଉଥିଲେ । ସେହି ସମୟରେ ଆଚାର୍ଯ୍ୟ ମହାଶୟ ହଠାତ୍ ସେଠାରେ ପହଞ୍ଚିଗଲେ । ମନ୍ତ୍ରୀ ଅଧପୋଡ଼ା ସିଗାରେଟ ଖଣ୍ଡିକ ଲୁଚାଇ ସାଙ୍ଗେ ସାଙ୍ଗେ ଦୂରକୁ ପକାଇଦେଲେ । ସେହି ଦିନୁ ସେ ଆଉ ଜମା ସିଗାରେଟ ଖାଇଲେ ନାହିଁ । କାଳେ କେଉଁବେଳେ ଆଚାର୍ଯ୍ୟ ମହାଶୟ ଦେଖି ପକାଇବେ—ଏହି ଭୟ ।

ଆଚାର୍ଯ୍ୟ ମହାଶୟ ଅତି ବୁଢ଼ା ହୋଇଗଲେ । ତଥାପି ନିଜ କାମରୁ ସେ ଅବସର ପାଇ ନ ଥିଲେ । ସବୁ ଦିନ ରାତି ଚାରିଟା ବେଳୁ ଉଠୁଥିଲେ । ନିଜ ଲୁଗାପଟା ସାବୁନ ଦେଇ ନିଜେ ସଫା କରୁଥିଲେ । ପ୍ରତିଦିନ ସୂତା କାଟି ସେହି ସୂତାରେ ବୁଣା ହୋଇଥିବା ଲୁଗା ପିନ୍ଧୁଥିଲେ । ତାଙ୍କ କାମ

ସେ ଆଉ କାହାକୁ କରିବାକୁ ଦେଉ ନ ଥିଲେ । ନିଜର ବହିଣାପତ୍ର, କନ୍ଥା ଖଣ୍ଡିଆ ନିଜେ କାନ୍ଧରେ ପକାଇ କୋଶ କୋଶ ବାଟ ଖାଲି ପାଦରେ ଗ୍ଭଲୁଥିଲେ; ଗାଁ ଗାଁ ବୁଲୁଥିଲେ, ଲୋକଙ୍କ ସେବା କରୁଥିଲେ, ଲୋକଙ୍କ ସାଙ୍ଗରେ ମିଶୁଥିଲେ ।

ସମୁଦାୟ ଓଡ଼ିଶା ଦେଶ ତାଙ୍କର ଘର ଥିଲା । ଓଡ଼ିଶାର ସବୁ ଲୋକ ତାଙ୍କର ଜ୍ଞାତି କୁଟୁମ୍ବ, ପିଲା କବିଲା । ଦୁନିଆରେ ଏପରି କେତେ ଜଣ ଲୋକ ମିଳିବେ ?

ଆଗ୍ଭର୍ଯ୍ୟ ମହାଶୟ ୯୪ବର୍ଷ ବଞ୍ଚିଥିଲେ । ଶେଷକୁ ତାଙ୍କ ଆଖିକୁ ଆଉ ଦେଖାଯାଉ ନଥିଲା । ତଥାପି ସେ ଚୁପ୍ ହୋଇ ଗୋଟିଏ ସ୍ଥାନରେ ବସି ନ ରହି ଗାଁ ଗାଁ ବୁଲୁଥିଲେ । ଲୋକଙ୍କ ଦୁଃଖ ସୁଖ ବୁଝୁଥିଲେ । ତାଙ୍କର ୧୯୭୧ ମସିହା ଫେବୃୟାରି ମାସରେ ପରଲୋକ ହୋଇଗଲା । ଦେଶ ମୁରବି ଛେଉଣ୍ଡ ହୋଇପଡ଼ିଲା ।

ଏ ଖବର ପାଇ ଆମ ଦେଶର ସବୁ ଲୋକେ ଅତି ବ୍ୟାକୁଳ ହୋଇଥିଲେ । ଆପଦ ବିପଦରେ ସାହା ହେବା ପାଇଁ, ହାଙ୍ଗା ଲଭରେ ପରାମର୍ଶ ଦେବା ପାଇଁ ଆଉ କେହି ରହିଲେ ନାହିଁ । ସମସ୍ତେ ମନେ କଲେ ଆମ ଘରର ବାପା କ ବଡ଼ ବାପା ଗ୍ଭଲିଗଲେ । ଆମେ ଚଳିବୁ କିପରି ?

ଆଗ୍ଭର୍ଯ୍ୟ ମହାଶୟଙ୍କର ଗୋଟିଏ ମାତ୍ର ଆଶୀର୍ବାଦ ଥିଲା—"ଭଲ ମଣିଷ ହୁଅ" ।

ଆମେ ଯଦି ଭଲ ମଣିଷ ହେବା, ତେବେ ପ୍ରକୃତରେ ତାଙ୍କର ଆଶୀର୍ବାଦ ପାଇପାରିବା ।